# ଆମର ପରିଚୟ

## ସାମାନ୍ୟ କଥନ —

ଆପଣମାନେ ଜାଣନ୍ତି, ଆମର ଏହି ବହୁମୁଖୀ ସାଂସ୍କୃତିକ ଅନୁଷ୍ଠାନ **'ପ୍ରଗତି ଉତ୍କଳ ସଂଘ'** କେବଳ ରାଉରକେଲାରେ ନୁହେଁ ସମଗ୍ର ଓଡ଼ିଶାରେ ମଧ୍ୟ ସୁପରିଚିତ । ଏପରିକି ବହିର୍ଭାଗ ଅଞ୍ଚଳ ତଥା ପଡ଼ୋଶୀ ରାଜ୍ୟମାନଙ୍କରେ ଏହାର ସୁଦୀର୍ଘ ପ୍ରଶସ୍ତି ରହିଛି । କର୍ତ୍ତବ୍ୟରେ ନିଷ୍ଠା, ପରିଚାଳନାରେ ଶୃଙ୍ଖଳା, କର୍ମ କ୍ଷେତ୍ରରେ ଉତ୍ସାହ-ଉଦ୍ଦୀପନା ଏବଂ ଅନ୍ୟମାନଙ୍କ ନିକଟରେ ସହନଶୀଳତା ତଥା ସୁସମ୍ପର୍କ ରକ୍ଷା କରି ଏହି ଅନୁଷ୍ଠାନ **'ପ୍ରଗତି'** ପଥରେ ଆଶାତୀତ ଭାବରେ ଅଗ୍ରଗତି କରି ଚାଲିଛି । ରାଉରକେଲା ପରି ଏକ ସମସ୍ୟା ବହୁଳ, ସୀମାନ୍ତ ଓ ସର୍ବଭାରତୀୟ ଶିଳ୍ପ ନଗରୀରେ ସୁସ୍ଥ ଜାତୀୟ ପରିବେଶ ତଥା ସଂହତି ସୃଷ୍ଟି କରି **'ଉତ୍କଳ'**ର ଭାଷା, ସାହିତ୍ୟ, କଳା-ସଂସ୍କୃତି ଓ ଐତିହ୍ୟର ଆନ୍ତରିକ ଚର୍ଚ୍ଚା ଦ୍ୱାରା ଏହାର ଶ୍ରୀବୃଦ୍ଧି ଓ ପ୍ରସାର ଘଟାଇବା ପାଇଁ ଆମେ ସମସ୍ତେ **'ସଂଘ'**ବଦ୍ଧ ହୋଇ ଶପଥ ନେଇଛୁ ।

## ଜନ୍ମ ବୃତ୍ତାନ୍ତ —

ଏହି ଅନୁଷ୍ଠାନଟି ଜନ୍ମନିଏ ୧୯୫୮ ମସିହା ଅଗଷ୍ଟ ମାସ ୧୫ ତାରିଖରେ, ରାଉରକେଲାରେ ନୁହେଁ ଅନ୍ୟ ଏକ ଶିଳ୍ପ ସହର ଟାଟା ନଗରୀରେ । ରାଉରକେଲା ଇସ୍ପାତ କାରଖାନାର କେତେକ ଯୁବକ ଶ୍ରମିକ ବନ୍ଧୁ ସେତେବେଳେ ଟ୍ରେନିଂ ନେଉ ଥାଆନ୍ତି ଯାଇଁ ଟାଟା କାରଖାନାରେ । ଓଡ଼ିଶାରେ ଶିଳ୍ପ ସମୃଦ୍ଧି ସହିତ ନିଜର ସାହିତ୍ୟ ସଂସ୍କୃତିର ଶ୍ରୀବୃଦ୍ଧି ଘଟାଇବା ଚିନ୍ତା କ୍ରମଶଃ ବଳବତ୍ତର ହୁଏ ସୁନ୍ଦରନଗର ହଷ୍ଟେଲର ସେଇ ଦ୍ୱିତଳ ପ୍ରାସାଦରେ ଏବଂ ତା'ରି ମଧ୍ୟରୁ ରୂପ ନିଏ ଆଜିର ଏହି ଲୋକପ୍ରିୟ ସାଂସ୍କୃତିକ ଅନୁଷ୍ଠାନ—"ପ୍ରଗତି ଉତ୍କଳ ସଂଘ" । ମାତ୍ର କେଇଟି ଦିନ ମଧ୍ୟରେ ଶିଶୁ ସୁଲଭ ଭାବରେ ଅନୁଷ୍ଠାନଟି ଏତେ ଆତ୍ମୀୟ ହୋଇ ଉଠେ ଯେ ଟ୍ରେନିଂ ଶେଷରେ ତାକୁ ସେଠାରେ ଛାଡ଼ି ଦେଇ କମ୍ପା ମାରି ଦେଇ ଆସିବାକୁ କାହାରି ଇଚ୍ଛା ହୁଏନି । ପରିଶେଷରେ ସୃଷ୍ଟି କର୍ତ୍ତାଙ୍କ ସାଥିରେ ଟ୍ରଙ୍କ୍ ବାକ୍ସର ଆବଦ୍ଧ କୋଳରେ ତାକୁ ସ୍ଥାନାନ୍ତରିତ କରାଯାଏ ରାଉରକେଲାର ନୂଆ ସହରକୁ; ନୂଆ ଢଙ୍ଗରେ ତାକୁ ଗଢ଼ି ତୋଳିବାକୁ ।

## ଉଦ୍ଦେଶ୍ୟ ଓ ଲକ୍ଷ୍ୟ —

କ। ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ରାଉରକେଲା ସହର ଓ ତା'ର ଚତୁଃପାର୍ଶ୍ୱରେ ଥିବା ମଫସଲ ଅଞ୍ଚଳରେ ଅର୍ଥନୈତିକ, ସାମାଜିକ, ଶିକ୍ଷା ଓ ସାଂସ୍କୃତିକ ଉନ୍ନତି ପାଇଁ କାର୍ଯ୍ୟ କରିବା ଓ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ ତଥା ବିପନ୍ନ ଅଞ୍ଚଳରେ ସେବା କରିବା।

ଖ। ରାଉରକେଲା ଓ ପାର୍ଶ୍ୱବର୍ତ୍ତୀ ଲୋକଙ୍କ ମଧ୍ୟରେ ସୁସ୍ଥ ବୁଝାମଣା, ବନ୍ଧୁତ୍ୱ ଓ ସୁସମ୍ପର୍କ ପ୍ରତିଷ୍ଠା କରିବା।

ଗ। ଉଚ୍ଚଶିକ୍ଷା ପାଇଁ ମେଧାବୀ ଗରିବ ଛାତ୍ର-ଛାତ୍ରୀଙ୍କୁ ବୃତ୍ତି କିମ୍ବା ସାହାଯ୍ୟ ଯୋଗାଇ ଦେବା।

ଘ। ଶିକ୍ଷା, ସଂସ୍କୃତି, ସାହିତ୍ୟର ଅଭିବୃଦ୍ଧି ଘଟାଇବା ପାଇଁ ସର୍ବସାଧାରଣଙ୍କୁ ଏକ ପଠନାଗାର ଯୋଗାଇ ଦେବା ଓ ନିୟମିତ ଭାବରେ ଗୋଟିଏ ପାଠାଗାର ପରିଚାଳନା କରିବା।

ଙ। ଗରିବ ଛାତ୍ରଙ୍କ ଅଧ୍ୟୟନ ପାଇଁ ଏକ ଲେଣ୍ଡିଂ ଲାଇବ୍ରେରୀ ଖୋଲିବା।

ଚ। ଓଡ଼ିଶାର ଇତିହାସ ଓ ସଂସ୍କୃତି ଭିତ୍ତିକ ପତ୍ର ପତ୍ରିକା, ବହି ବା ସ୍ମାରକୀମାନ ପ୍ରକାଶ କରିବା।

ଛ। କ୍ରୀଡ଼ା ମନୋବୃତ୍ତି ସୃଷ୍ଟି କରି ପ୍ରତ୍ୟେକ କ୍ଷେତ୍ରରେ ଶୃଙ୍ଖଳା, ଏକତା ଓ ଉତ୍ସାହ ବୃଦ୍ଧି କରିବା ନିମନ୍ତେ ବିଭିନ୍ନ ଆଉଟ୍‌ଡୋର ଓ ଇନ୍‌ଡୋର କ୍ରୀଡ଼ାର ବ୍ୟବସ୍ଥା କରିବା ଓ ପ୍ରତିଯୋଗିତାମାନ ପରିଚାଳନା କରିବା।

ଜ। ରାଉରକେଲାର ସର୍ବଭାରତୀୟ ସମାଜକୁ ଓଡ଼ିଶାର କଳା ଓ ସଂସ୍କୃତି ଅଭିମୁଖୀ କରାଇବା ନିମିତ୍ତ ନାଟକ ମଞ୍ଚସ୍ଥ, ନୃତ୍ୟ ଓ ସଙ୍ଗୀତ ପରିବେଷଣ କରିବା ବା କରାଇବା — ଇତ୍ୟାଦି।

## ସମ୍ବିଧାନ ଓ ପରିଚାଳନା —

ଏହି ଅନୁଷ୍ଠାନଟି ୧୮୬୦ ରେଜିଷ୍ଟ୍ରେସନ ଆଇନ ଅନୁଯାୟୀ ରେଜିଷ୍ଟ୍ରିଭୁକ୍ତ ଓ ଏହା ସୁନ୍ଦରଗଡ଼ ଜିଲ୍ଲା କ୍ରୀଡ଼ା ସଂସଦ ସହ ସଂଶ୍ଳିଷ୍ଟ। ଏହାର ଏକ ସ୍ୱତନ୍ତ୍ର ସମ୍ବିଧାନ ରହିଛି। ଗଣତନ୍ତ୍ର ପଦ୍ଧତିରେ ଏହି 'ସଂଘ'ର ପରିଚାଳନା କରାଯାଏ। ପ୍ରତିବର୍ଷ ଅଗଷ୍ଟମାସ

୧୫ ତାରିଖରେ ଅନୁଷ୍ଠାନର ବାର୍ଷିକ ସାଧାରଣ ସଭାରେ ନୂତନ କର୍ମକର୍ତ୍ତା ନିର୍ବାଚିତ ହୁଅନ୍ତି । ସେମାନେ ନିୟମିତ ଭାବରେ ନିଷ୍ଠା ଓ ଦକ୍ଷତାର ସହିତ ସଂଘର କାର୍ଯ୍ୟକ୍ରମ ସଂପାଦନ କରିବା ପାଇଁ ସର୍ବଦା ସଚେତନ ଥାଆନ୍ତି । ପ୍ରତ୍ୟେକ ବିଭାଗ ଯେପରି ସୁଚାରୁରୂପେ ଶୃଙ୍ଖଳିତ ଭାବରେ ପରିଚାଳିତ ହେବ ସେଥିପାଇଁ ଉପ-ନିୟମାବଳୀମାନ ପ୍ରଣୟନ କରାଯାଇଛି ଓ ବିଭାଗଗୁଡ଼ିକର ଦାୟିତ୍ୱ ଭିନ୍ନ ଭିନ୍ନ ସଭ୍ୟଙ୍କ ଉପରେ ନ୍ୟସ୍ତ କରାଯାଇଛି ।

ଜାତି-ଧର୍ମ-ବର୍ଣ୍ଣ ବା ପୁରୁଷ ସ୍ତ୍ରୀ ନିର୍ବିଶେଷରେ ସମସ୍ତଙ୍କୁ ଏହାର ସଭ୍ୟ ଭାବରେ ଗ୍ରହଣ କରାଯାଏ । ଯେ କେହି ବ୍ୟକ୍ତି ନିୟମାନୁଯାୟୀ ପ୍ରଥମେ ପ୍ରବେଶିକା ଚାନ୍ଦା ମାତ୍ର ଦୁଇଟଙ୍କା ଦେଇ ସଭ୍ୟ ଶ୍ରେଣୀ ଭୁକ୍ତ ହୁଅନ୍ତି ଏବଂ ପ୍ରତି ମାସରେ ତାଙ୍କୁ ଏକ ଟଙ୍କା କିମ୍ବା ବାର୍ଷିକ ସଭ୍ୟ ଚାନ୍ଦା ୧୦ ଟଙ୍କା ଅଥବା ଆଜୀବନ ସଭ୍ୟ ଚାନ୍ଦା ୧୦୦ ଟଙ୍କା ଦେବାକୁ ହୁଏ । କୌଣସି ସଭ୍ୟଙ୍କ ପ୍ରତି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ । ଯେ କୌଣସି ସଭ୍ୟ ବା କର୍ମକର୍ତ୍ତା 'ସଂଘ'ର ସ୍ୱାର୍ଥ ବିରୋଧି କାର୍ଯ୍ୟ କଲେ କଠିନ ଶାସ୍ତି ବିଧାନ କ୍ରମରେ ପରିଷ୍କାର ବ୍ୟବସ୍ଥା ରହିଛି । ବର୍ତ୍ତମାନ ଏହି ଅନୁଷ୍ଠାନର ସଭ୍ୟ ସଂଖ୍ୟା ପ୍ରାୟ ୨୫୦ ଜଣ । ତନ୍ମଧ୍ୟରୁ ଆଜୀବନ ସଭ୍ୟ ୧୫ ଜଣ, ବାର୍ଷିକ ସଭ୍ୟ ସଂଖ୍ୟା ୧୦୫ । ଓଡ଼ିଶାର ବହୁ ଖ୍ୟାତନାମା ଶିକ୍ଷାବିତ୍, ସାହିତ୍ୟିକ, ଶିଳ୍ପପତି, ପ୍ରଶାସକ, ଇଂଜିନିୟର, କ୍ରୀଡ଼ାବିତ୍, ଐତିହାସିକ, ସାମ୍ବାଦିକ ଓ ଶିଳ୍ପୀଙ୍କୁ ସଭ୍ୟ ଭାବରେ ଗ୍ରହଣ କରି ଏହି ଅନୁଷ୍ଠାନ ଗର୍ବ ଅନୁଭବ କରେ ।

## ଆର୍ଥିକ ସ୍ଥିତି —

ସ୍ଥାନୀୟ ଇଉନାଇଟେଡ଼ କମରସିଆଲ ବ୍ୟାଙ୍କରେ ଅନୁଷ୍ଠାନର ଏକ ଆକାଉଣ୍ଟ ଅଛି । ଏହା ସଭାପତି, ସାଧାରଣ ସମ୍ପାଦକ ଓ କୋଷାଧ୍ୟକ୍ଷଙ୍କ ମିଳିତ ଦସ୍ତଖତରେ ପରିଚାଳିତ ହୁଏ । ସଂଘର ବାର୍ଷିକ ଆୟବ୍ୟୟ ନିୟମିତ ଭାବେ ଲିପିବଦ୍ଧ କରାଯାଏ ଓ ନିଷ୍ଠା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଇଥାଏ । ସଂଘ ସହ ସଂପୃକ୍ତ ନଥିବା ଜଣେ ଯୋଗ୍ୟତା ସମ୍ପନ୍ନ ହିସାବ ସମୀକ୍ଷକଙ୍କ ଦ୍ୱାରା ସଂଘର ବାର୍ଷିକ ଆୟବ୍ୟୟ ହିସାବ ସମୀକ୍ଷା (Audit) କରାଯାଏ ଓ ପ୍ରତିବର୍ଷ ସରକାରଙ୍କ ହିସାବ ସମୀକ୍ଷକ ମଧ୍ୟ ଆସି ଏହାକୁ ପୁନରାୟ ସମୀକ୍ଷା କରନ୍ତି । ଅନୁଷ୍ଠାନର ବହୁମୁଖୀ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ନିମ୍ନମତେ ପାଣ୍ଠି ସଂଗ୍ରହ କରାଯାଇଥାଏ ।

୧ । ସଭ୍ୟମାନଙ୍କର ପ୍ରବେଶିକା ଓ ସଭ୍ୟ ଚାନ୍ଦା ।
୨ । ସରକାରୀ ଓ ବେସରକାରୀ ସାହାଯ୍ୟ ।
୩ । ବ୍ୟକ୍ତି ବିଶେଷ, ବାଣିଜ୍ୟ ଓ ଶିଳ୍ପ ପ୍ରତିଷ୍ଠାନ ତଥା ଅନ୍ୟାନ୍ୟ ସୂତ୍ରରୁ ଦାନ ।

୪। ବନ୍ଧୁମାନଙ୍କ ମଧ୍ୟରେ "ଭାଗ୍ୟବାନ ଦାତା" ଯୋଜନା ପ୍ରଣୟନ ଦ୍ୱାରା।
୫। ବ୍ୟାଙ୍କରୁ କିଛି ସୁଧ ଆକାରରେ।
୬। ଏହା ବ୍ୟତୀତ ଆମର ସଭ୍ୟମାନେ ଶ୍ରମ ଦେଇ, ସଂଘର ମାଇକ୍, ତାରପଲିନ୍, ରେଢେଇ ସାମଗ୍ରୀମାନ ଭଡ଼ାରେ ଲଗାଇ ଯାହା କିଛି ମିଳେ, ତାହା ଏହି ଅନୁଷ୍ଠାନର ଉନ୍ନତି ତଥା ଜାତୀୟ ସ୍ୱାର୍ଥରେ ଖର୍ଚ୍ଚ କରାଯାଏ।

## କାର୍ଯ୍ୟାଳୟ —

ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର କର୍ତ୍ତୃପକ୍ଷ ଆମ ସଂଘର ପରିଚାଳନା ପାଇଁ ସାତ ନମ୍ବର ସେକ୍ଟରରେ ଗୋଟିଏ ଘର କମ୍ ଭଡ଼ାରେ ଯୋଗାଇ ଦେଇଛନ୍ତି। ସେଠାରେ ସଂଘର ଦୈନନ୍ଦିନ କାର୍ଯ୍ୟକ୍ରମ କୌଣସିମତେ ନିର୍ବାହିତ ହୁଏ। ଏହା ବ୍ୟତୀତ 'ଉତ୍କଳ ସମ୍ମିଳନୀ'ର ରାଉରକେଲା ଶାଖା, 'ପାରଳା ମହାରାଜାଙ୍କ ସ୍ମୃତି କମିଟି'ର ରାଉରକେଲା ଶାଖା, ରାଉରକେଲା ରେଳବାଇ ବ୍ୟବହାରକ କମିଟି ଓ ପୁରାତନ ଟ୍ରେନିଙ୍ଗ ସମାଜ ମଙ୍ଗଳ ପାର୍ଟିର କାର୍ଯ୍ୟକ୍ରମ ମଧ୍ୟ ଏଠାରେ ସାମୟିକଭାବେ ପରିଚାଳିତ ହୁଏ।

## ଆଜିର ସ୍ଥିତି ଓ ଅଗ୍ରଗତି

## ପାଠାଗାର —

ଏହି ସଂଘର ଏକ ଆକର୍ଷଣୀୟ ପାଠାଗାର ରହିଛି। ବାର୍ଷିକ ସାଧାରଣ ସଭାରେ ନିର୍ବାଚିତ ପ୍ରତିନିଧିମାନେ ଅବୈତନିକଭାବେ ଏହାର ଦୈନନ୍ଦିନ କାର୍ଯ୍ୟଭାର ବହନ କରନ୍ତି। ନିର୍ଦ୍ଦିଷ୍ଟ ନିୟମାବଳୀ ଅନୁସାରେ ଏହା ପରିଚାଳିତ ହୁଏ। ଦୈନିକ ହାରାହାରି ଶହେଜଣ ସଭ୍ୟଙ୍କୁ ବିଭିନ୍ନ ଇଚ୍ଛାନୁଯାୟୀ ବହିମାନ ପ୍ରଦାନ କରାଯାଏ। ପ୍ରତି ସନ୍ଧ୍ୟାରେ ପାଠାଗାରର କାଉଣ୍ଟର ନିକଟରେ ଧାଡ଼ି ବାନ୍ଧି ଠିଆ ହୋଇଥିବା ସାହିତ୍ୟ-ସଂସ୍କୃତି ପ୍ରେମୀ ବନ୍ଧୁମାନଙ୍କର ଗୁଞ୍ଜରଣ ଯେ କେହି ଆଗନ୍ତୁକଙ୍କ ହୃଦୟକୁ ବିମୋହିତ କରିଥାଏ। ପାଠାଗାରରେ ଓଡ଼ିଆ, ହିନ୍ଦି, ଇଂରାଜୀ ଓ ବଙ୍ଗଳା ଭାଷାର ପ୍ରାୟ ସାତ ହଜାର ରୁଚିଶୀଳ, ଉପାଦେୟ ଓ ମୂଲ୍ୟବାନ ପୁସ୍ତକମାନ ସଞ୍ଚିତ ରହିଛି।

ଦୁଷ୍ପ୍ରାପ୍ୟ ପୁସ୍ତକ, ମୂଲ୍ୟବାନ ଦଲିଲ ତଥା ବିଭିନ୍ନ ବହୁ ପୁରାତନ ପତ୍ର-ପତ୍ରିକା ଗୁଡ଼ିକୁ ଉତ୍ତମରୂପେ ପୃଥକ କରି ଯେଉଁ "ରେଫେରେନ୍ସ ବିଭାଗ ରଖା ଯାଇଛି ତାହା ମଧ୍ୟ ଏହି ପାଠାଗାରର ଅନ୍ତର୍ଭୁକ୍ତ। ତଦ୍ୱାରା ବହୁ ସାହିତ୍ୟିକ, ସାମ୍ବାଦିକ, ଗବେଷକ ତଥା ଛାତ୍ର-ଛାତ୍ରୀମାନେ ବିଶେଷଭାବେ ଉପକୃତ ହୁଅନ୍ତି।

## ପଠନାଗାର –

ଏହି ବିଭାଗଟି ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ । ସଭ୍ୟ ନଥିବା ଯେ କୌଣସି ବ୍ୟକ୍ତି ପଠନାଗାରରେ ଅଧ୍ୟୟନ କରି ପାରିବେ । ଏହି ବିଭାଗ ପାଇଁ ବିଭିନ୍ନ ଭାଷାର ଦୈନିକ, ମାସିକ, ପାକ୍ଷିକ ଓ ସାପ୍ତାହିକ ପତ୍ର ପତ୍ରିକାମାନ ଯୋଗାଇ ଦିଆଯାଇଥାଏ । ସନ୍ଧ୍ୟାର ଚଞ୍ଚଳତା ମଧ୍ୟରେ ବି ନୀରବତା ଅବଲମ୍ବନ କରି କାଗଜ ପୃଷ୍ଠା ଭିତରୁ କିଛି ନା କିଛି ଆହରଣ କରିବାରେ ପ୍ରତ୍ୟେକ ଯେପରି ବ୍ୟସ୍ତ । ପଠନାଗାରର ଚତୁପାର୍ଶ୍ୱ କାନ୍ଥରେ ଓଡ଼ିଶାର ବରପୁତ୍ର ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, କବିବର ରାଧାନାଥ, ବ୍ୟାସକବି ଫକୀର ମୋହନ, ଆଚାର୍ଯ୍ୟ ହରିହର, ବୀର ସୁରେନ୍ଦ୍ର ସାଏ, ସ୍ୱଭାବକବି ଗଙ୍ଗାଧର ଓ ସୁପୁତ୍ର ପାରଳା ମହାରାଜା ପ୍ରଭୃତିଙ୍କ ମନ ମୁଗ୍ଧକର ତୈଳଚିତ୍ରମାନ ଶୋଭା ବର୍ଦ୍ଧନ କରେ ।

## କ୍ରୀଡ଼ା ବିଭାଗ –

ଶୃଙ୍ଖଳା, ଉତ୍ସାହ, ଉଦ୍ଦୀପନା ତଥା ଦଳଗତ ଏକତା ଭିତରେ କ୍ରୀଡ଼ା ବିଭାଗର ପରିସର ମୁଖରିତ ହୁଏ । ଫୁଟବଲ, ଭଲିବଲ, ବ୍ୟାଡ଼ମିଣ୍ଟନ ପ୍ରଭୃତି ବାହ୍ୟକ୍ରୀଡ଼ା ଏବଂ କ୍ୟାରମ୍, ତାସ, ଚେସ ପ୍ରଭୃତି ଆନ୍ତଃକ୍ରୀଡ଼ାରେ ମଜିରହି ସଭ୍ୟମାନେ ବାହାର ସଂସାରକୁ ଯେପରି ଭୁଲିଯାଇ ଥାଆନ୍ତି । ବିଶିଷ୍ଟ ସାମ୍ବାଦିକ ତଥା ସମାଜସେବୀ ସ୍ୱର୍ଗତ ଘନଶ୍ୟାମ ନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରତିବର୍ଷ ଏକ 'ଭଲିବଲ ପ୍ରତିଯୋଗିତା' ଅନୁଷ୍ଠିତ ହୁଏ ଏବଂ ସାମୟିକଭାବେ ଫୁଟବଲ, କ୍ୟାରେମ୍ ଓ ତାସର ବିଭିନ୍ନ ପ୍ରତିଯୋଗିତାମାନ ମଧ୍ୟ ପରିଚାଳନା କରାଯାଏ ।

## ନାଟକ ଓ ସାଂସ୍କୃତିକ ପରିକ୍ରମା —

ଇସ୍ପାତ ମଣିଷର ମନକୁ ସରସ ସୁନ୍ଦର ଓ ଆନନ୍ଦମୟ କରି ଗଢ଼ିବାକୁ ତଥା ଶିଳ୍ପାଞ୍ଚଳର ଶୁଷ୍କ ନୀରସ ପରିବେଶକୁ ଭାବ ମୁଖରିତ କରିବାକୁ ପ୍ରତିବର୍ଷ ନାଟକ ସଙ୍ଗୀତ ତଥା ଅନ୍ୟାନ୍ୟ ସାଂସ୍କୃତିକ ବିଚିତ୍ରା କାର୍ଯ୍ୟକ୍ରମ ପରିବେଷଣ କରାଯାଏ । ଅନୁଷ୍ଠାନ ଦ୍ୱାରା ଏପର୍ଯ୍ୟନ୍ତ ସଫଳତାର ସହିତ ଆଠଟି ନାଟକ ମଞ୍ଚସ୍ଥ କରାଯାଇଛି । ବିଭିନ୍ନ ସମୟରେ ନାନା ଉତ୍ସବର ଅବତାରଣା କରାଯାଇ ପ୍ରତିବର୍ଷ ଧାରାବାହିକଭାବେ ସଙ୍ଗୀତ ଓ ନୃତ୍ୟ ପରିବେଷିତ ହୋଇଛି । ଅନୁଷ୍ଠାନ ଦ୍ୱାରା ପରିଚାଳିତ ନୃତ୍ୟ-ସଙ୍ଗୀତ-ବିଦ୍ୟାଳୟ କେତେକ ଅସୁବିଧାକୁ ବିଚାର କରି ବର୍ତ୍ତମାନ ପାଇଁ ଅସ୍ଥାୟୀଭାବେ ସ୍ଥଗିତ ରଖା ଯାଇଛି । ପ୍ରତିବର୍ଷ ଏପ୍ରିଲ ପହିଲା 'ଉତ୍କଳ ଦିବସ' ଉତ୍ସବରେ ବିଶିଷ୍ଟ କଣ୍ଠ ଶିଳ୍ପୀ ତଥା ନୃତ୍ୟ ସଙ୍ଗୀତ

ଅନୁଷ୍ଠାନମାନ ଅଂଶ ଗ୍ରହଣ କରିଥାଆନ୍ତି । ସ୍ଥାନୀୟ କଳାକାରମାନଙ୍କୁ ମଧ୍ୟ ଉତ୍ସାହିତ କରାଯାଇ ଥାଏ। ଯେଉଁ ଅନୁଷ୍ଠାନ ତଥା କଳାକାର ଏହି କାର୍ଯ୍ୟକ୍ରମକୁ ରୂପାୟିତ କରିଛନ୍ତି, ସେମାନେ ହେଲେ —

## ନୃତ୍ୟର ବିଭିନ୍ନ ଭଙ୍ଗୀରେ —

ସମ୍ବଲପୁର କଳା ପରିଷଦ—ସମ୍ବଲପୁର
ଆଗ୍ରୁଣି କଳା ମନ୍ଦିର—ଜାମସେଦପୁର
ରାଉରକେଲା କଳା ପରିଷଦ—ରାଉରକେଲା
କବିଚନ୍ଦ୍ର କଳାକେନ୍ଦ୍ର—ରାଉରକେଲା
ନଟରାଜ ନୃତ୍ୟ ପରିଷଦ—ରାଉରକେଲା
କୁମାରୀ କୁଙ୍କୁମ ଦାସ—କଟକ
ନୃତ୍ୟ ଗୁରୁ କେଳୁଚରଣ ମହାପାତ୍ର, କଟକ—ଇତ୍ୟାଦି ।

## ସଙ୍ଗୀତର ଅପୂର୍ବ ମୂର୍ଚ୍ଛନାରେ —

ଶ୍ରୀ ଭୁବନେଶ୍ୱର ମିଶ୍ର
ଶ୍ରୀ ଗୋପାଳ ମହାନ୍ତି
ଶ୍ରୀ ଅକ୍ଷୟ ମହାନ୍ତି
ଶ୍ରୀ ଶ୍ରୀବତ୍ସ ପଟ୍ଟନାୟକ
ପଦ୍ମଶ୍ରୀ ନିମାଇଁ ଚରଣ ହରିଚନ୍ଦନ
ଶ୍ରୀ ବାଞ୍ଛାନିଧି ଶତପଥୀ (ସ୍ୱର ସାଧକ)
ଶ୍ରୀ ଭିକାରୀ ଚରଣ ବଳ
କୁମାରୀ ତୃପ୍ତି ଦାସ
ଶ୍ରୀ ଧନଞ୍ଜୟ ଶତପଥୀ
ଶ୍ରୀ ପ୍ରଣବ ପଟ୍ଟନାୟକ
ଶ୍ରୀ ଦେବାଶିଷ ମହାପାତ୍ର
ଶ୍ରୀ ଫକୀର ଚରଣ ପଟ୍ଟନାୟକ
କୁମାରୀ ସନ୍ଧ୍ୟା ମିଶ୍ର
ଶ୍ରୀମତୀ ଆରତୀ ମିଶ୍ର
ଭଞ୍ଜ କଳାକେନ୍ଦ୍ର—ଓ ଆହୁରି ଅନେକ ।

## ପୂଜା ପର୍ବ ଓ ସ୍ମୃତି-ଉତ୍ସବ —

ସ୍ୱତନ୍ତ୍ର ଓଡ଼ିଶାର ଜନ୍ମତିଥି ଏପ୍ରିଲ ପହିଲାକୁ "ଉତ୍କଳ ଦିବସ" ନାମରେ ନାମିତ କରି ଏହି ଅନୁଷ୍ଠାନ ସର୍ବ ପ୍ରଥମେ ଓଡ଼ିଶାରେ ୧୯୬୮ ମସିହାଠାରୁ ନିୟମିତ ଭାବେ ବହୁ ଆଡ଼ମ୍ବର ସହକାରେ ଏହି ଜାତୀୟ ଉତ୍ସବକୁ ପାଳନ କରି ଆସୁଛି ! ସୁଖର କଥା, ଆଜି ସରକାରଙ୍କ ଦ୍ୱାରା ତଥା ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ ଅନୁଷ୍ଠାନ ଆନୁକୂଲ୍ୟରେ ଏହି ଉତ୍ସବକୁ ବହୁଳ ଭାବରେ ପାଳନ କରାଗଲାଣି । 'ମଧୁସୂଦନ ଜୟନ୍ତୀ' ମଧ୍ୟ ଏହା ସହିତ ପାଳିତ ହୁଏ । ଏହା ବ୍ୟତୀତ ସରସ୍ୱତୀ ପୂଜା, ଗଣେଶ ପୂଜା, ବାର୍ଷିକୋତ୍ସବ, ସ୍ୱାଧୀନତା ଦିବସ, ଗଣତନ୍ତ୍ର ଦିବସ, ସମ୍ବର୍ଦ୍ଧନା ସଭା, ସାହିତ୍ୟ ଆସର, ବିଭିନ୍ନ ମନୀଷିଙ୍କ ଜୟନ୍ତୀ, ଶ୍ରାଦ୍ଧୋତ୍ସବ, ଶୋକ ଦିବସ ଇତ୍ୟାଦି ନିୟମିତଭାବେ ଅନୁଷ୍ଠିତ ହୁଏ । ଏପ୍ରିଲ ପହିଲା "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ଉତ୍ସବର ସାଧାରଣ ସଭାମାନଙ୍କରେ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍, ଐତିହାସିକ, ସାହିତ୍ୟିକ, ରାଜନୀତିଜ୍ଞ, ପ୍ରଶାସନିକ ତଥା ସାମ୍ବାଦିକମାନେ ଯୋଗଦେଇ ସାରଗର୍ଭକ ଉଦ୍‌ବୋଧନମାନ ଦେଇ ଥାଆନ୍ତି । ଏପର୍ଯ୍ୟନ୍ତ ଯେଉଁମାନେ ଖଡ଼ଗପୁରର ଜନସାଧାରଣଙ୍କୁ ବିଶେଷଭାବେ ମୁଗ୍ଧ କରିଛନ୍ତି, ସେମାନେ ହେଲେ—

ଡ: ମନ୍ମଥନାଥ ଦାସ
ଡ: ନବୀନ କୁମାର ସାହୁ
ଡ: ଶ୍ରୀରାମଚନ୍ଦ୍ର ଦାଶ
ଡ: ସଦାଶିବ ମିଶ୍ର
ଡ: କୁଞ୍ଜବିହାରୀ ଦାଶ
ଡ: କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
ଡ: ରାଧାନାଥ ରଥ
ପ୍ରଫେସର ଭୁବନେଶ୍ୱର ବେହେରା
ଜଷ୍ଟିସ୍ ହରିହର ମହାପାତ୍ର
ଶ୍ରୀମତୀ ରମା ଦେବୀ
ଶ୍ରୀଯୁକ୍ତ ନୀଳମଣି ସେନାପତି
ଶ୍ରୀଯୁକ୍ତ ଶ୍ରୀହର୍ଷ ମିଶ୍ର
ଶ୍ରୀଯୁକ୍ତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ
ଶ୍ରୀଯୁକ୍ତ ଶ୍ରୀନିବାସ ରଥ

ଶ୍ରୀଯୁକ୍ତ ସାତକୋଡ଼ି ହୋତା
ଅଧ୍ୟାପକ ପଠାଣି ପଟ୍ଟନାୟକ
ଅଧ୍ୟାପକ ପ୍ରାଣବନ୍ଧୁ କର
ଡଃ ପ୍ରଭୁଲାଲ ଅଗ୍ରୱାଲ — ଇତ୍ୟାଦି ।

## ସମ୍ବର୍ଦ୍ଧନା ଜ୍ଞାପନ —

ସେମାନଙ୍କର କୃତି ପାଇଁ ଜାତୀୟ ସ୍ତରରେ ସମ୍ମାନିତ ହୋଇଥିବା ଓଡ଼ିଶାର ଯେ କୌଣସି କଳାକାର, ଶିଳ୍ପୀ, କ୍ରୀଡ଼ାବିତ୍, ସାହିତ୍ୟିକମାନଙ୍କୁ ଆମ ଅନୁଷ୍ଠାନ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ଉତ୍ସବରେ ସମ୍ମାନିତ କରି ଆସିଛୁ । ପୁଣି ଯେଉଁ ନୀରବ ସାଧକମାନେ ଜାତି-ସମାଜ, ଭାଷା-ସାହିତ୍ୟ ଇତ୍ୟାଦିର ବିକାଶ ପାଇଁ ନିସ୍ୱାର୍ଥ ସେବା ଓ ତ୍ୟାଗରେ ସେମାନଙ୍କର ସାରା ଜୀବନ ଉତ୍ସର୍ଗ କରି ଆସି ବାର୍ଦ୍ଧକ୍ୟରେ ଉପନୀତ ହେଲେଣି, ପରିଣତ ବୟସରେ ସେମାନଙ୍କୁ ଲୋକ-ଲୋଚନକୁ ଆଣି ସମ୍ମାନ ପ୍ରଦର୍ଶନ କରିବା ମଧ୍ୟ ଏହି କାର୍ଯ୍ୟକ୍ରମର ଅନ୍ୟ ଏକ ଉଦ୍ଦେଶ୍ୟ ।

ଓଡ଼ିଶାର ଯେଉଁ ବରେଣ୍ୟ କୃତି ସନ୍ତାନମାନଙ୍କୁ ଆମେ ଏ ଯାଏ ସମ୍ମାନିତ କରିଛୁ ସେମାନଙ୍କ ମଧ୍ୟରେ ମୁଖ୍ୟ ହେଲେ —

ଶ୍ରୀ ସୁରେନ୍ଦ୍ର ମହାନ୍ତି—ସାହିତ୍ୟ ସେବା
ସ୍ୱର୍ଗତ ବ୍ରଜବନ୍ଧୁ ଦାସ—ସମାଜ ସେବା
ଶ୍ରୀ ବିନୋଦ କାନୁନ୍‌ଗୋ—ଶିଶୁ ସାହିତ୍ୟ ଓ ଜ୍ଞାନମଣ୍ଡଳ
ଶ୍ରୀ ସାମୁଏଲ୍ ସାହୁ (ବାବି)—କଳାକାର
ଶ୍ରୀ ଭଗବାନ ମେହେର—ସାହିତ୍ୟ ଓ ସମାଜ ସେବା
କୁମାରୀ ମଞ୍ଜୁଳା ସାମନ୍ତରାୟ—ମଞ୍ଚ ଅଭିନେତ୍ରୀ
କୁମାରୀ ମିନତୀ ମହାପାତ୍ର—କ୍ରୀଡ଼ା କୌଶଳ
କୁମାରୀ ଉଷାରାଣୀ ମିଶ୍ର —କ୍ରୀଡ଼ା କୌଶଳ

ଏତଦ୍‌ଭିନ୍ନ ଭିତରକେନ୍ଦ୍ରର ଯେଉଁ ବ୍ୟକ୍ତି ବିଶେଷ ବା ଅନୁଷ୍ଠାନ ଜାତୀୟ ସ୍ତରରେ ନୃତ୍ୟ, ସଙ୍ଗୀତ ବା ନାଟକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଯୋଗ୍ୟ ବିବେଚିତ ହୁଅନ୍ତି, ସେମାନଙ୍କୁ ମଧ୍ୟ ଏହି ଅନୁଷ୍ଠାନ ସ୍ୱତନ୍ତ୍ର ଉତ୍ସବରେ ସମ୍ମାନିତ କରେ । ବର୍ତ୍ତମାନ ସୁଦ୍ଧା ସମ୍ମାନିତ ହୋଇଥିବା ଅନୁଷ୍ଠାନମାନ ହେଲେ —

ସୁନ୍ଦରଗଡ଼ କଳାପରିଷଦ
ଲାଇଫ୍ ଆଣ୍ଡ ରିଦମ୍
ଭଞ୍ଜ କଳାକେନ୍ଦ୍ର
କଳିଙ୍ଗ କଳାପରିଷଦ—ଇତ୍ୟାଦି

ଭୁବନେଶ୍ୱରସ୍ଥ ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ଓଡ଼ିଆ ଭାଷା ଅଧ୍ୟୟନ କରୁଥିବା ବଙ୍ଗ, ବିହାର, ଆନ୍ଧ୍ର, ଆସାମ, ମଧ୍ୟପ୍ରଦେଶ, ମେଘାଳୟ ପ୍ରଭୃତି ବିଭିନ୍ନ ପ୍ରଦେଶର ଛାତ୍ର-ଛାତ୍ରୀମାନଙ୍କୁ ସୁନ୍ଦରଗଡ଼ ଶିକ୍ଷାଗସ୍ତ ସମୟରେ ଏହି ଅନୁଷ୍ଠାନ ଏକ ସ୍ୱତନ୍ତ୍ର ଉତ୍ସବ ମାଧ୍ୟମରେ ପ୍ରତିବର୍ଷ ସାଦର ସମ୍ବର୍ଦ୍ଧନା ଜଣାଇଥାଏ । ପରସ୍ପର ପ୍ରତି ଭାବ ଓ ଭାଷାର ବିନିମୟରେ ସେମାନଙ୍କ ସହ ସୁଦୃଢ଼ ସମ୍ପର୍କ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଜାତୀୟ ସଂହତିର ମର୍ଯ୍ୟାଦା ସୁଦୃଢ଼ କରେ ।

## ମଧୁସୂଦନ-ସ୍ମୃତି-ପୁରସ୍କାର —

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କୁ ସୁଦୂର ଗ୍ରାମାଞ୍ଚଳରେ ସୁପରିଚିତ କରାଇବା ତଥା ଆଦିବାସୀ ଭାଇମାନଙ୍କୁ ଶିକ୍ଷାଭିମୁଖୀ କରି ଓଡ଼ିଶାର ସମୃଦ୍ଧି ବିଷୟରେ ଅଧିକ ସଚେତନଶୀଳ କରାଇବା ଉଦ୍ଦେଶ୍ୟରେ "ମଧୁସୂଦନ ସ୍ମୃତି" ପୁରସ୍କାର ଦିଆଯାଇ ଥାଏ । ପ୍ରତିବର୍ଷ ଜଣେ ଲେଖାଏଁ ମେଧାବୀ ଗରିବ ଆଦିବାସୀ ଛାତ୍ରଙ୍କୁ ଅନ୍ୟାନ୍ୟ ଉପାଦେୟ ପୁସ୍ତକ ସହିତ ନଗଦ ୧୦୧ ଟଙ୍କା ପୁରସ୍କାର ଆକାରରେ ଦିଆଯାଏ । ଏହି ପୁରସ୍କାର ବର୍ତ୍ତମାନ ପାଇଁ କେବଳ ସୁନ୍ଦରଗଡ଼ ଜିଲାର ଗ୍ରାମାଞ୍ଚଳ ପାଇଁ ସୀମିତ ରଖା ଯାଇଛି । ଯେଉଁମାନେ ଏପର୍ଯ୍ୟନ୍ତ ଏହି ପୁରସ୍କାର ହାସଲ କଲେଣି ସେମାନେ ହେଲେ—

ଶ୍ରୀ ମାଥେର ବାରଲ୍ — ନୂଆଗାଁ ପଞ୍ଚାୟତ ବିଦ୍ୟାଳୟ
ଶ୍ରୀ ଗୁଲ୍ଓ୍ୱା କେରକେଟା — ହାତିବାଡ଼ି ହାଇସ୍କୁଲ
ଶ୍ରୀ ରାମିଆଁ ମୁଣ୍ଡା — ଲହୁଣୀପଡ଼ା ହାଇସ୍କୁଲ
ଶ୍ରୀ କାର୍ତ୍ତିକ ଚନ୍ଦ୍ର ଅମାତ — ବାଙ୍କି ବଜାର ଜନତା ବିଦ୍ୟାପୀଠ
ଶ୍ରୀ ଭଗବାନ ସାହୁ — କେନାଭେଟା ହାଇସ୍କୁଲ
ଶ୍ରୀ ମହେନ୍ଦ୍ର ମୁଣ୍ଡାରି — ସିହିଡ଼ିଆ ହାଇସ୍କୁଲ
ଶ୍ରୀ ଗୋପାଳ ଗଜପତି — ବିଶ୍ରା ହାଇସ୍କୁଲ

ମେଧାବୀ ଗରିବ ଛାତ୍ରମାନଙ୍କୁ ବୃତ୍ତି ଦେବା ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଗୋଟିଏ ସ୍ୱର୍ଣ୍ଣ ପଦକ ପ୍ରଦାନ କରିବା ପାଇଁ ଯୋଜନା ହାତକୁ ନିଆ ଯାଇଛି । ଆର୍ଥିକ ପରିସ୍ଥିତି ଅନୁକୂଳ ହେଲେ ସେଥିପ୍ରତି ବିହିତ ପ୍ରତିକାର କରାଯିବ ।

## ଗବେଷଣା କେନ୍ଦ୍ର ଓ ପ୍ରକାଶନୀ —

ମଧୁସୂଦନ ଦାସଙ୍କର ଜୀବନ ସମ୍ବନ୍ଧୀୟ ତଥା ଓଡ଼ିଶାର ସାମାଜିକ, ଅର୍ଥନୈତିକ, ଐତିହାସିକ, ନୃତ୍ୟ ବା ସୃଷ୍ଟିକଳା ଇତ୍ୟାଦିକୁ ଭିତ୍ତିକରି ପ୍ରତିବର୍ଷ "ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ" ଉତ୍ସବ ଉପଲକ୍ଷେ ଗୋଟିଏ ଉପାଦେୟ ତଥା ଆକର୍ଷଣୀୟ **'ସ୍ମାରକୀ'** ପ୍ରକାଶିତ ହୁଏ । ଏହାକୁ ସମ୍ପାଦନା କରନ୍ତି ବିଶିଷ୍ଟ ଐତିହାସିକ ଡ଼ଃ ନବୀନ କୁମାର ସାହୁ । ଓଡ଼ିଶାର ସୁନାମଧନ୍ୟ ରାଜନୀତିଜ୍ଞ, ସାହିତ୍ୟିକ, ଶିକ୍ଷାବିତ୍, ସାମ୍ବାଦିକ ତଥା ବହୁ ବୁଦ୍ଧିଜୀବୀ ତଥ୍ୟ ସମ୍ବଳିତ ମୂଲ୍ୟବାନ ଲେଖାମାନ ଦେଇ 'ସ୍ମାରକୀ'ଟିର ଶ୍ରୀବୃଦ୍ଧି ଘଟାଇଥାଆନ୍ତି ।

ଏତଦ୍‌ଭିନ୍ନ ମଧୁସୂଦନ ଦାସଙ୍କର ଜୀବନୀ ଓ କାର୍ଯ୍ୟକଳାପକୁ ଭିତ୍ତିକରି ଗୋଟିଏ **'ଗବେଷଣା କେନ୍ଦ୍ର'** ପ୍ରତିଷ୍ଠା କରିବାର ଏକ ଦୃଢ଼ ଚେଷ୍ଟା ସଂଘ ହାତକୁ ନେଇଛି । ଓଡ଼ିଶାର ତଥା ଭାରତର ବିଭିନ୍ନ ସ୍ଥାନରୁ ତାଙ୍କର ଲେଖା, ଫଟୋ, ଚିଠି, ବକ୍ତୃତା ଓ ବ୍ୟକ୍ତିଗତ ସମ୍ପର୍କୀୟ ବିଭିନ୍ନ ତଥ୍ୟ ସଂଗ୍ରହ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି । ଏ ବାବଦରେ ପ୍ରାୟ ଦୁଇ ହଜାର ଟଙ୍କା 'ସଂଘ' ଖର୍ଚ୍ଚ କଲାଣି । ଦିଲ୍ଲୀ, ପାଟଣା, କଲିକତା ଓ କଟକ ଇତ୍ୟାଦିରୁ କେତେକ କାଗଜପତ୍ର ମଧ୍ୟ ହସ୍ତଗତ ହେଲାଣି । ଅଧ୍ୟାପକ ପି. କେ. ମିଶ୍ର ଆମକୁ ଏ କାର୍ଯ୍ୟରେ ସାହାଯ୍ୟ କରୁଛନ୍ତି । ଆବଶ୍ୟକୀୟ କାଗଜ-ପତ୍ର ମିଳି ସାରିଲେ ପ୍ରକାଶ କରିବାର ବ୍ୟବସ୍ଥା ଗ୍ରହଣ କରାଯିବ ।

## ସ୍ମୃତି ପୂଜା —

ପ୍ରତିବର୍ଷ ଏପ୍ରିଲ ପହିଲାଦିନ **'ଉତ୍କଳ ଦିବସ ଓ ମଧୁସୂଦନ ଜୟନ୍ତୀ'** ପାଳନ କରି ସାଧାରଣ ସଭାମାନଙ୍କରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ଗୁଣାବଳୀ ଆଲୋଚନା କରାଯାଇ ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଏ । ସ୍କୁଲ ଛାତ୍ର-ଛାତ୍ରୀମାନଙ୍କ ଦ୍ୱାରା ବିଭିନ୍ନ ବରପୁତ୍ରମାନଙ୍କ ସମ୍ବନ୍ଧରେ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା କରାଇ ସେମାନଙ୍କର ସୁନାମ କୀର୍ତ୍ତନ ହୁଏ । ଏହା ବ୍ୟତୀତ ଅନ୍ୟାନ୍ୟ କୃତି ସନ୍ତାନ-ମାନଙ୍କର ସାମୟିକ ଭାବେ ଜୟନ୍ତୀ ଓ ଶ୍ରାଦ୍ଧୋତ୍ସବ ବା ଶୋକ ଦିବସ ଜରିଆରେ ସ୍ମୃତି ପୂଜାର ଆୟୋଜନ ମଧ୍ୟ କରାଯାଏ ।

ମଧୁସୂଦନଙ୍କ ନାମରେ ଗୋଟିଏ ସ୍ମାରକୀ **ଡାକ ଟିକଟ** ପ୍ରଚଳନ ପାଇଁ ଓ ଉତ୍କଳ ଦିବସକୁ ଏକ ସରକାରୀ **ଛୁଟି ଦିବସ** ରୂପେ ଘୋଷଣା କରିବାକୁ ଏହି ଅନୁଷ୍ଠାନ

ବହୁ ଦିନରୁ ଯେଉଁ ଦାବୀ ଓ ଉଦ୍ୟମ କରି ଆସୁଥିଲା, ତାହା ସଫଳ ହୋଇଛି । ରାଉରକେଲା ଇସ୍ପାତ କାରଖାନା କର୍ତ୍ତୃପକ୍ଷ ମଧ୍ୟ ଏହି ଦାବିଟିକୁ ଇଚ୍ଛାଧୀନ ଛୁଟି ଭାବରେ ଗ୍ରହଣ କରି ଉଦାରତା ଦେଖାଇଛନ୍ତି । ଏତଦ୍‌ଭିନ୍ନ ରାଉରକେଲାର ବସଷ୍ଟାଣ୍ଡ ନିକଟରେ ଯେଉଁ ନୂଆ ମାର୍କେଟ ତିଆରି ହୋଇଛି, ଏହି ଅନୁଷ୍ଠାନର ଉଦ୍ୟମ ଫଳରେ ସ୍ଥାନୀୟ କର୍ତ୍ତୃପକ୍ଷ ତାକୁ 'ମଧୁବାବୁ'ଙ୍କ ନାମରେ ନାମିତ କରି **'ମଧୁସୂଦନ ମାର୍କେଟ'** ରଖିଛନ୍ତି ଓ ଟ୍ରଙ୍କ ରୋଡଠାରୁ ରେଳ ଷ୍ଟେସନ ଯାଏ ତିଆରି ହେଉଥିବା ପ୍ରଧାନ ରାସ୍ତାର ନାମ **'ମଧୁସୂଦନ ମାର୍ଗ'** ରଖା ଯାଇଛି ।

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ସ୍ମୃତି ପୂଜା ଉଦ୍ଦେଶ୍ୟରେ ଏହି ଅନୁଷ୍ଠାନ ( ବାସଗୃହ ଓ କାର୍ଯ୍ୟାଳୟରେ ସ୍ଥାନ ପାଇଲା ଭଳି ) ଦାମୀ କାଗଜ ଉପରେ ତାଙ୍କର ବିଭିନ୍ନ **'ପ୍ରତିକୃତି'** ଛପାଇ ସର୍ବସାଧାରଣଙ୍କୁ ବିତରଣ କରି ଆସିଛି । ଯଦ୍ୱାରା କି ଓଡ଼ିଶା ତଥା ଉପାନ୍ତ ଅଞ୍ଚଳର ବିଭିନ୍ନ ସ୍ଥାନରେ ଏଗୁଡ଼ିକ ହଜାର ହଜାର ସଂଖ୍ୟାରେ ଉକ୍ତ ବରପୁତ୍ରଙ୍କ ମହାନ ସ୍ମୃତିକୁ ଉଦ୍‌ଜୀବିତ ତଥା ଶୋଭା ବର୍ଦ୍ଧନ କରି ପ୍ରକାଶିତ କରିପାରିଛି ।

## ସଂହତି ଓ ସମନ୍ୱୟ —

ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା କରିବା ପାଇଁ ଏହି ଅନୁଷ୍ଠାନ ଯତ୍‌ପରୋନାସ୍ତି ଉଦ୍ୟମ କରିଛି । ରାଉରକେଲାରେ କେନ୍ଦ୍ରୀୟ ସାଂସ୍କୃତିକ ଅନୁଷ୍ଠାନର ପରିକଳ୍ପନାକୁ ବାସ୍ତବ ରୂପ ଦେବାକୁ ଆନ୍ତରିକତାର ସହିତ ବହୁକାଳରୁ ସହଯୋଗ କରି ଆସୁଛି ଏବଂ ମୁଖ୍ୟ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ମଧ୍ୟରେ ସୁହୃଦତା ଓ ସହଯୋଗ ବୃଦ୍ଧି ପାଇବା ପାଇଁ ଗଠିତ 'ସମନ୍ୱୟ କମିଟି'ରେ ଏହି ଅନୁଷ୍ଠାନ ମୁଖ୍ୟ ଅଂଶ ଗ୍ରହଣ କରିଛି ।

## ଆବଶ୍ୟକତା —

ଏହି ଅନୁଷ୍ଠାନ ବର୍ତ୍ତମାନ ଅଠର ବର୍ଷ ବୟସରେ ପଦାର୍ପଣ କରିଛି । ଶିଶୁ ଅବସ୍ଥାରେ ଯାହା କିଛି ପ୍ରଗତି ହାସଲ କରିଛି, ତାହା ସନ୍ତୋଷଜନକ ନହେଲେ ବି ହତୋତ୍ସାହ କରେନି । ଏବେ ସମୟ ଆସିଛି, ଶକ୍ତି ସାମର୍ଥ୍ୟ ବଢ଼ିଛି ଓ ସୁଯୋଗ ମିଳିଛି । ଅନୁଷ୍ଠାନର ନିଷ୍ଠା, କର୍ମ ତତ୍ପରତା ଓ ସଭ୍ୟମାନଙ୍କର ପ୍ରୟାସ ଏବଂ ଆନ୍ତରିକ ପ୍ରଚେଷ୍ଟା ପ୍ରତି ଅନ୍ୟମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସ ଘନୀଭୂତ ହୋଇଛି । ସରକାରଙ୍କଠାରୁ ଆରମ୍ଭ କରି ଜନସାଧାରଣଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ସଂଘକୁ ସବୁ କାର୍ଯ୍ୟରେ ନାନା ଦିଗରୁ ସାହାଯ୍ୟ, ସହଯୋଗ ଓ ସହାନୁଭୂତି ମିଳିଛି । ଏହି ସଂଘର କାର୍ଯ୍ୟକ୍ରମକୁ ଆହୁରି ତ୍ୱରାନ୍ୱିତ କରି ଆଗେଇ ନେବାର ପ୍ରଧାନ ପ୍ରତିବନ୍ଧକ ଓ ଦୁଃଖ ହେଲା, ଏହି ଅନୁଷ୍ଠାନର ନିଜର ଗୃହ ନାହିଁ । ଏଥିପାଇଁ ଖଣ୍ଡିଏ ଉପଯୁକ୍ତ ସ୍ଥାନ ପାଇବା ଆଶାରେ ୧୯୬୩ ମସିହାଠାରୁ ନାନା ଚେଷ୍ଟା ହୋଇ ଆସୁଥିଲେ ମଧ୍ୟ ଏପର୍ଯ୍ୟନ୍ତ ତାହା ସମ୍ଭବ ହୋଇନି । ତେଣୁ ସ୍ଥାନୀୟ କର୍ତ୍ତୃପକ୍ଷ ତଥା ସରକାର ଏଥିପ୍ରତି ବିଶେଷ ସହାନୁଭୂତିଶୀଳ ହୋଇ ଉଚିତ ବ୍ୟବସ୍ଥା ଗ୍ରହଣ କରିବେ ବୋଲି ଆଶାକରୁ ।



ଯେଉଁ ଅନୁଷ୍ଠାନ ତଥା ବ୍ୟକ୍ତିବିଶେଷ ଖଡ଼ଗପୁରରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ବ୍ରୋଞ୍ଜ ପ୍ରତିମୂର୍ତ୍ତି ପ୍ରତିଷ୍ଠା କାର୍ଯ୍ୟରେ ନାନା ଦିଗରୁ ସାହାଯ୍ୟ ସହଯୋଗ କରି ଆମକୁ ଉତ୍ସାହିତ କରିଛନ୍ତି ସେମାନଙ୍କୁ ବିନମ୍ର କୃତଜ୍ଞତା ଜଣାଉଛୁ ।

—ପ୍ରଗତି ଉତ୍କଳ ସଂଘ

# କିଏ କ'ଣ କହନ୍ତି

★ "Appriciate to the objects and various activities of your Sangha. I very much regret I am unable to comply as I am under treatment and not keeping well.

Late — K. C. GAJAPATI
Maharaja of Paralakhemudi
22-1-1974.

★ "ଆପଣମାନଙ୍କର ଉଦ୍ୟମ ସଫଳ ହେଉ, ମୋର ଯିବା ପାଇଁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ରକ୍ତଚାପ ବଢ଼ି ଥିବାରୁ ଏମାନେ ମନା କରୁଛନ୍ତି । ଆପଣମାନଙ୍କ କାର୍ଯ୍ୟ ପ୍ରତି ଶୁଭେଚ୍ଛା ଓ ଆଶୀର୍ବାଦ ରହୁଛି । ଭଲ ମଣିଷ ହୋଇ ଭଲ କାମ ସମସ୍ତେ କରନ୍ତୁ ।"

৺ —ଆଚାର୍ଯ୍ୟ ହରିହର ଦାସ
୨୭।୩।୧୯୭୯

★ "ରାଉରକେଲା ଯାଇ ଆପମାନଙ୍କ ସଙ୍ଗ ଭେଟନ୍ତି - କେଡ଼େ ସୌଭାଗ୍ୟ ହୁଅନ୍ତା, ତେବେ ଏ ବାର୍ଦ୍ଧକ୍ୟ ବୟସରେ ଏତେ ବାଟ କେମିତି ଯିବି - କେବଳ ସେଇ ଚିନ୍ତା ।"

৺ - ମୁକୁନ୍ଦ ପ୍ରସାଦ ଦାସ
(ପ୍ରଥମ ବାଚସ୍ପତି)
୧୪।୧।୧୯୭୯

★ "ଏ ଅନୁଷ୍ଠାନକୁ ଆସି ମୋ ଜୀବନ ସାର୍ଥକ ହୋଇଛି । ଈଶ୍ୱର ଆପଣମାନଙ୍କର ଲକ୍ଷ୍ୟ ପୂରଣ କରନ୍ତୁ, 'ମଧୁବାବୁ' ବଞ୍ଚନ୍ତୁ ।"

৺ —ବ୍ରଜବନ୍ଧୁ ଦାସ
୨।୪।୧୯୭୩

★ "ବ୍ୟକ୍ତିଗତ ଅସୁବିଧା ବଶତଃ ଉତ୍ସବରେ ଯୋଗଦେଇ ନପାରିବାରୁ ଦୁଃଖିତ । ଉଦ୍ଦେଶ୍ୟ ସଫଳ ହେଉ, ଏହାହିଁ କାମନା ।"

—ପ୍ରାଣକୃଷ୍ଣ ପରିଜା
୨୯।୨।୧୯୭୮

★ "ଅନୁଷ୍ଠାନର ପ୍ରଶସ୍ତି ସମ୍ବାଦ ପତ୍ରରୁ ଜାଣିଥିଲି । ଆଜି କିନ୍ତୁ ନିଜେ ଦେଖି-ଗଲି । ଏକପକ୍ଷରେ ପ୍ରାଚୀନ ଉତ୍କଳର ମହାନ ସଂସ୍କୃତି ଏବଂ ଅନ୍ୟ ପକ୍ଷରେ ଆଧୁନିକ ଉତ୍କଳର ଅର୍ଥନୀତିକ ବିଭବ, ଏଇ ଦୁଇ ବୈଶିଷ୍ଟ୍ୟର ପରିପ୍ରେକ୍ଷୀରେ ଉତ୍କଳୀୟମାନଙ୍କ ମନରେ ଦେଶାତ୍ମବୋଧ, ଐକ୍ୟ ତଥା ସଂହତି ଉଦ୍ରେକ କରିବା ପାଇଁ ଆପଣମାନଙ୍କର ପ୍ରଚେଷ୍ଟା ପ୍ରଶଂସନୀୟ । ଜନ୍ମଭୂମିର ଐତିହ୍ୟ ଓ ମହାପୁରୁଷମାନଙ୍କର ଜୀବନୀ ପର୍ଯ୍ୟାଲୋଚନା ପ୍ରତ୍ୟେକ ସଚେତନ ଦେଶପ୍ରିୟ ବ୍ୟକ୍ତିର କର୍ତ୍ତବ୍ୟ । ସେହି କର୍ତ୍ତବ୍ୟ ପ୍ରତି ପ୍ରେରଣାର ସୃଜନ ପାଇଁ ଆପଣମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।"

—**ମନ୍ମଥନାଥ ଦାସ**

୨।୪।୯୭୮

★ "ଆହୁରି ଯିବାକୁ ଅଛି । ଆପଣମାନେ ଯିବାପାଇଁ ସମର୍ଥ ହେବେ, ଏହି ଭରସା ରଖିଲି ।"

—**ମନମୋହନ ମିଶ୍ର**

୨୪।୧।୧୯୭୮

★ "ଏକ ସଚେତନ ଓ ସଜୀବ ଶକ୍ତିରେ ଆମେ ଉଦ୍‌ବୃଦ୍ଧ ହେଉ । ଆମ ପଛରେ ଏକ ପ୍ରଦୀପ୍ତ ଆଧ୍ୟାତ୍ମିକ ଶକ୍ତି ରହିଛି । ମୋର ଦୃଢ଼ ବିଶ୍ୱାସ - ଆପଣମାନଙ୍କ ମଧ୍ୟରେ ଏହି ସାଉଟ୍‌ବେଲ୍‌ରୁହିଁ ଓଡ଼ିଆ ଜାତିର ନବ ଅଭ୍ୟୁତ୍ଥାନ ହେବ । ତାହା ଆପଣମାନେ ଆରମ୍ଭ କଲେଣି ।"

— **ମହାପାତ୍ର ନୀଳମଣି ସାହୁ**

୩୧।୧୨।୧୯୭୮

★ "ଆଜି ଏ ଅନୁଷ୍ଠାନକୁ ଆସି ମୁଁ ଆନନ୍ଦିତ । ୧୯୫୮ ମସିହାରେ ମୁଁ ଏ ସହରକୁ ପ୍ରଥମେ ଆସେ । କିନ୍ତୁ ସେତେବେଳେ ଏ ସହରରେ ଓଡ଼ିଆର ପ୍ରାଣ ପ୍ରତିଷ୍ଠା ନେଇ ମୁଁ ସନ୍ଦିହାନ ହୋଇ ପଡ଼ିଥିଲି । କିନ୍ତୁ ଆଜି ମୋର ସେ ସନ୍ଦେହ ଦୂର କରିବାରେ ଏ ଅନୁଷ୍ଠାନ ସାହାଯ୍ୟ କରିଛି ।

ମୋର ପ୍ରାର୍ଥନା ମା' ଏ ଅନୁଷ୍ଠାନକୁ ତାଙ୍କର ଆଶୀଷ ଦେଇ ଓଡ଼ିଶା ତଥା ଭାରତର ନବ ଜାଗରଣରେ ଆମର ଯଥାଶକ୍ତି ସକ୍ରିୟ ଅଂଶ ଗ୍ରହଣ କରିବାରେ ସାହାଯ୍ୟ କରିବେ ।"

—**ଜଗନ୍ନାଥ ପଣ୍ଡା**

ଅଧ୍ୟକ୍ଷ, ଅନ୍ଧମୂକ ବଧିର ବିଦ୍ୟାଳୟ, ଭୁବନେଶ୍ୱର

୩୧।୧୨।୧୯୭୮

★ "ଆଜି ମୁଁ ପ୍ରଗତି ଉତ୍କଳ ସଂଘ ଉତ୍ସବରେ ଯୋଗ ଦେବାକୁ ଆସି ସଂଘର ଲକ୍ଷ୍ୟ, ଉଦ୍ୟମ ଓ ଆତ୍ମମୁଖ୍ୟ ଦେଖି ସନ୍ତୁଷ୍ଟ । ମୁଁ ସଂଘର ଉନ୍ନତି କାମନା କରେ ।"

—ଶ୍ରୀରାମଚନ୍ଦ୍ର ଦାଶ
୧।୪।୧୯୬୯

★ "ପ୍ରଗତି ଉତ୍କଳ ସଂଘର କାମ ଆରମ୍ଭ ମାତ୍ର ହୋଇଛି । ପ୍ରକୃତରେ ପ୍ରଗତି ଉତ୍କଳ ସଂଘର ଲକ୍ଷ୍ୟ ଓ କାର୍ଯ୍ୟ ଯାହା ହେବା ଆବଶ୍ୟକ ତାହା ପୂରଣ କରିବା ଦିଗରେ ସଂଘ ସଦା ଉଦ୍ୟମଶୀଳ ହେବେ; ଏହାହିଁ ଆଶା କରୁଛି । ପ୍ରଗତିର ନାନା ଦିଗ ଅଛି, ସଂଘ ସେ ସବୁ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ବାଞ୍ଛନୀୟ ।"

—ରମା ଦେବୀ
୧।୪।୧୯୬୯

★ "ପ୍ରଗତି ଉତ୍କଳ ସଂଘ ରାଉରକେଲା ନଗରୀର ଏକ ପ୍ରଖ୍ୟାତ ସାଂସ୍କୃତିକ ଅନୁଷ୍ଠାନ । ଏହି ଅନୁଷ୍ଠାନ ସହ ମୁଁ ନାନା ଭାବରେ ସଂପୃକ୍ତ । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିର ଅନୁଧ୍ୟାନ ଓ ଗବେଷଣା କରି ନୂତନ ଆଲୋକର ସନ୍ଧାନ ଏହି ଅନୁଷ୍ଠାନର ଲକ୍ଷ୍ୟ । ଏହାର ଲକ୍ଷ୍ୟ ଓ ଆଦର୍ଶ ସଫଳ ଲାଭ ହେଉ ସର୍ବଥା କାମ୍ୟ ।"

—ନବୀନ କୁମାର ସାହୁ
୧।୪।୧୯୬୯

★ "ସଂଘର କାର୍ଯ୍ୟ ଓ ଉଦ୍ୟମ ପ୍ରଶଂସନୀୟ । ଈଶ୍ୱର ମଙ୍ଗଳ କରନ୍ତୁ ।"

—ରାଧାନାଥ ରଥ
୧୮।୨।୧୯୭୦

★ "ପ୍ରଗତି ଉତ୍କଳ ସଂଘର କାର୍ଯ୍ୟକ୍ରମ ସବୁ ଶୁଣିଥିଲି । ବର୍ତ୍ତମାନ ଦେଖି ଅତ୍ୟନ୍ତ ମୁଗ୍ଧ ହେଲି । ଓଡ଼ିଆ ସାହିତ୍ୟ ସଂସ୍କୃତି ରକ୍ଷା କରିବାରେ ଏହି ଅନୁଷ୍ଠାନର ତତ୍ପରତା ଅନ୍ୟମାନଙ୍କର ଅନୁକରଣୀୟ । ଉତ୍କଳ ଦିବସ ପାଳନ କରି ଓ ମଧୁବାବୁଙ୍କ ସ୍ମରଣିକା ପ୍ରକାଶ କରି ଏହି ଅନୁଷ୍ଠାନ ଜାତିର ସେବାରେ ନିଷ୍ଠାପର ସହିତ ଲାଗିପଡ଼ିଛନ୍ତି । ଜାତି, ଭାଷା ଓ ସାହିତ୍ୟର ସେବାରେ ପ୍ରଗତି ଉତ୍କଳ ସଂଘର କର୍ମକର୍ତ୍ତା ଏବଂ ସଭ୍ୟମାନଙ୍କୁ ଜଗନ୍ନାଥ ସହାୟକ ହେବେ, ଏହାହିଁ କାମନା ।"

—ବସନ୍ତ କୁମାର ପାଣିଗ୍ରାହୀ
ସାଧାରଣ ସମ୍ପାଦକ, ଉତ୍କଳ ସମ୍ମିଳନୀ
୧୮।୨।୧୯୭୦

★ "All congratulations for the Organisers of Pragati Utkal Sangha for the grand success of the function and deligated to take part in the function. We hope such occasions should arise when we can interchange our artist between these two Steel Cities of India and thereby preseve and enhance our sacred and proud heritage."

—M. PRADHAN
(President, Utkal Association)
Tatanagar
2-4-1970

★ "ମୁଁ ଜଣେ ପ୍ରବାସୀ ଓଡ଼ିଆ । ପ୍ରଗତି ଉତ୍କଳ ସଂଘ ଓଡ଼ିଆ ସଂସ୍କୃତିକୁ ବଢ଼ାଇବା ପାଇଁ ଓ ପ୍ରବାସୀମାନଙ୍କ ସହ ସୁସମ୍ପର୍କ ରକ୍ଷା କରିବାକୁ ଯେଉଁ ଉଦ୍ୟମ କରୁଛି, ତାହା ପ୍ରଶଂସନୀୟ । ଏହି ସଂସ୍ଥା ଉନ୍ନତିରୁ ଉନ୍ନତ ସ୍ତରକୁ ବଢ଼ି ଚାଲୁ ଏହାହିଁ ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।"

—ବନବିହାରୀ ଆଚାର୍ଯ୍ୟ
(ଅଧ୍ୟକ୍ଷ, ଆଚାର୍ଯ୍ୟ କଳା ମନ୍ଦିର)
ଜାମସେଦପୁର
୧।୪।୧୯୭୦

★ "ରାଉରକେଲା ପ୍ରାଚୀନ ଓ ଆଧୁନିକ ବିଭବର ସମ୍ମିଶ୍ରଣ । ଏଠାରେ ଯେଉଁ ଉଦ୍ୟୋକ୍ତାମାନେ ଉତ୍କଳର ସଂସ୍କୃତି ଜାଗରିତ ରଖି ତାକୁ ଅଧିକ ଉଦ୍‌ବୁଦ୍ଧ କରିବାକୁ ପ୍ରୟାସ କରୁଛନ୍ତି, ସେମାନେ ଧନ୍ୟବାଦାର୍ହ । ମୁଁ ଏ ସମିତିର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ଉତ୍କଳୀୟ ସଂସ୍କୃତି ବ୍ୟାପକ ଭାବରେ ପ୍ରତି ସହର, ପଲ୍ଲୀ ମଧ୍ୟରେ ପ୍ରବେଶ କରି ଏ ଦେଶର ଭିତ୍ତିକୁ ସୁଦୃଢ଼ କରିବ ନିଶ୍ଚୟ ।"

—ସଦାଶିବ ମିଶ୍ର
୨।୪।୧୯୭୦

★ "A well organised and disciplined organisation I had seen at Rourkela."

—NILAMANI SENAPATI
26-5-1970

★ "ଓଡ଼ିଶାର ଶିଳ୍ପନଗରୀ ରାଉରକେଲାକୁ ଆସିଥିଲି ଏହି ଅନୁଷ୍ଠାନର କର୍ମକର୍ତ୍ତାଙ୍କ ଅନୁରୋଧ ଏଡ଼ି ନ ପାରି ମାତ୍ର ଏହି ସ୍ୱଳ୍ପ ଘଣ୍ଟା ଭିତରେ ଯାହା ଦେଖିଲି ତାହା ମୋର ବହୁଦିନ ମନେ ରହିବ । ଏତେ ସୁନ୍ଦର ଅନୁଷ୍ଠାନ ଓଡ଼ିଶାର ଅନ୍ୟଠାରେ ବିରଳ । ପ୍ରତ୍ୟେକ ସଭ୍ୟ ତାଙ୍କର ପ୍ରାଣ ଦେଇ ଅନୁଷ୍ଠାନର ଉନ୍ନତି ପାଇଁ ଚେଷ୍ଟା କରୁଛନ୍ତି । ଏଠି ପୁସ୍ତକାଗାର, ବ୍ୟାୟାମ, କ୍ରୀଡ଼ା ଗୃହ, ନୃତ୍ୟ ଶିକ୍ଷା, ନାଟକ ପରିବେଷଣ ବିଭାଗ ଓ ପାଠାଗାର ସବୁ ରହିଛି । ସୁନ୍ଦର, ପରିଷ୍କାର ଓଡ଼ିଆ ସଂସ୍କୃତିର ପରିଚୟ ଏଠାରୁ ଶିଖିବାକୁ ମିଳେ । ମୁଁ ସର୍ବାନ୍ତକରଣରେ ଏହି ଅନୁଷ୍ଠାନର ଉନ୍ନତି କାମନା କରୁଛି ଏବଂ ନିଜକୁ ଏହି ଅନୁଷ୍ଠାନର ଏକ ସଭ୍ୟ ରୂପେ ଆଜିଠାରୁ ଗଣିବାର ଅନୁରୋଧ କରୁଛି ।"

—**କାର୍ତ୍ତିକ କୁମାର ଘୋଷ**

୭।୪।୧୯୭୦

★ "ସଂଘର ପାଠାଗାର, ମଧୁ-ସ୍ମାରକୀ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟାବଳୀ ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲି । ରାଉରକେଲା ପରି ଏକ ଶିଳ୍ପ ସହରରେ ସାଧାରଣ ଉତ୍କଳୀୟର ସ୍ଥାନ ଅତ୍ୟନ୍ତ ନଗଣ୍ୟ । ଉତ୍କଳୀୟ ସଂସ୍କୃତି ଓ ମୂଲ୍ୟବୋଧର ସମୁଚିତ ବିକାଶ ପାଇଁ ସଂଘ ଯେ ତତ୍ପର ସଚେଷ୍ଟ ଓ ସକ୍ରୀୟ ଏହା ଏକ ଗୌରବର ବିଷୟ । ପ୍ରଗତି ଉତ୍କଳ ସଂଘ ପ୍ରତି ମୋର ବିନମ୍ର ସହାନୁଭୂତି ଏଥି ସହ ଜ୍ଞାପନ କରୁଛି ।"

—**ନରସିଂହ ସ୍ୱାଇଁ**, (ଆଇ. ଜି.)

୧୩।୧୨।୧୯୭୦

★ "ପ୍ରଗତି ଉତ୍କଳ ସଂଘ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରଚାର ପାଇଁ ଯେଉଁ ପାଠାଗାର ଆରମ୍ଭ କରିଛନ୍ତି ତା'ର ନିଷ୍ଠା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ । ଏହାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ଏବଂ ପ୍ରତ୍ୟେକ ଓଡ଼ିଶାବାସୀ ଏହାର ଶ୍ରୀବୃଦ୍ଧି ପାଇଁ ଚେଷ୍ଟା କଲେ ମୁଁ ସୁଖୀ ହେବି ।

—**ଶରତ କୁମାର କର**

୧୭।୫।୧୯୭୧

★ "ପ୍ରଗତି ଉତ୍କଳ ସଂଘ ଦ୍ୱାରା ପରିଚାଳିତ ଲାଇବ୍ରେରୀ ପରିଦର୍ଶନ କରି, ଏହି ଅନୁଷ୍ଠାନର କାର୍ଯ୍ୟକ୍ରମ ବିଶେଷତଃ ଉତ୍କଳ ଗୌରବ ସ୍ମାରକୀ ପ୍ରକାଶନ ପାଇଁ କର୍ମକର୍ତ୍ତାଙ୍କୁ ଧନ୍ୟବାଦ ଦେଉଛି ଏବଂ ଏହାର ଉତ୍ତରୋତ୍ତର କାମନା କରୁଛି ।"

—ବିଶ୍ୱନାଥ ଦାସ

୨୪।୮।୧୯୭୧

★ "ପ୍ରଗତି ଉତ୍କଳ ସଂଘର ମହନୀୟ କାର୍ଯ୍ୟକଳାପ ଦେଖି ମୋତେ ବହୁତ ଖୁସି ଲାଗିଲା । ମୋର ଆଶା ପ୍ରଗତି ଉତ୍କଳ ସଂଘ ରାଉରକେଲାର ଓଡ଼ିଆ ଭାଇମାନଙ୍କ ମଧ୍ୟରେ ଭାତୃଭାବ ପ୍ରଚାର କରିବାରେ କୃତକାର୍ଯ୍ୟ ହେବ ।"

—ପ୍ରଫେସର **ଭୁବନେଶ୍ୱର ବେହେରା**

୧।୪।୧୯୭୨

★ "ଇସ୍ପାତ ନଗରୀ ରାଉରକେଲାରେ ପ୍ରଗତି ଉତ୍କଳ ସଂଘ ଯେପରି ଭାବରେ ଓଡ଼ିଆ ଭାଷା, ସଂସ୍କୃତି ଓ ଐତିହ୍ୟର ସୁରକ୍ଷା ପାଇଁ କାର୍ଯ୍ୟ କରି ଆସୁଛି, ସେଥିରୁ ଓଡ଼ିଶାବାସୀ ଯଥେଷ୍ଟ ପ୍ରେରଣା ଆହରଣ କରିବାର ଅଛି । ଏହି ଅନୁଷ୍ଠାନର ଅଭିବୃଦ୍ଧି ମୁଁ କାମନା କରୁଛି ।"

—**ସୁରେନ୍ଦ୍ର ମହାନ୍ତି**

୧।୪।୧୯୭୨

★ "ପ୍ରଗତି ଉତ୍କଳ ସଂଘ କେବଳ ରାଉରକେଲାରେ ନୁହେଁ, ସମଗ୍ର ଓଡ଼ିଶାର ଏକ ଆଦର୍ଶ ଅନୁଷ୍ଠାନ । ଉତ୍କଳର ଯଥାର୍ଥ ପ୍ରଗତି ଏହାର ପ୍ରତ୍ୟେକ ସଭ୍ୟଙ୍କ ଜୀବନର ଶ୍ରେଷ୍ଠ କାମ୍ୟ ହେଉ, ଏତିକି କାମନା ।"

—**ଶ୍ରୀହର୍ଷ ମିଶ୍ର**

୧।୪।୧୯୭୨

★ "ପ୍ରଗତି ଉତ୍କଳ ସଂଘର ଉତ୍ସାହୀ ସଭ୍ୟମାନଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । ଯେଉଁ ମହତ ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ସେମାନେ ସାଂସ୍କୃତିକ କାର୍ଯ୍ୟରେ ଆତ୍ମ ନିୟୋଜିତ ହୋଇଛନ୍ତି, ତାହା ସର୍ବତୋଭାବେ ଅଭିନନ୍ଦନୀୟ । ଏହି ଅନୁଷ୍ଠାନର ପ୍ରଗତିହିଁ ମୋର ଏକାନ୍ତ କାମନା ।"

—**ଜାନକୀ ବଲ୍ଲଭ ମହାନ୍ତି**

୧୪।୫।୧୯୭୨

★ "I visited Pragati Utkal Sangha to-day and was impressed by different activities they have taken in to hand. This over powered me and I along with my nephew have become life member of the Sangha."

—KASHI PRASAD JHUNJHUNWALA
31-1-1973

★ "Visiting the Sangha to-day was a very pleasant experience for my wife and me. May God always help and guide the laudable efforts of this organisation."

—A. MOHANTY
11-2-1973

★ "ଅନୁଷ୍ଠାନ ବ୍ୟକ୍ତି ଗଢ଼େ ନା ବ୍ୟକ୍ତି ଅନୁଷ୍ଠାନ ଗଢ଼େ ? ଏହି ପ୍ରଶ୍ନର ଉତ୍ତର ମିଳିବ ପ୍ରଗତି ଉତ୍କଳ ସଂଘର କାର୍ଯ୍ୟାବଳୀରୁ । ନିଷ୍ଠା ଥିଲେ ସବୁବେଳେ ସବୁଠାରେ ଚେଷ୍ଟା ସଫଳ ହୁଏ ।"

—ଜଷ୍ଟିସ୍ ହରିହର ମହାପାତ୍ର
୧।୪।୧୯୭୩

★ "ପ୍ରଗତି ଉତ୍କଳ ସଂଘର ଅଫିସ ଓ ଲାଇବ୍ରେରୀ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ଓଡ଼ିଶାରେ ଯେଉଁ ବହୁ ସାଂସ୍କୃତିକ ସଂଘ ଅଛି, ସେଥି ମଧ୍ୟରୁ ଏହି ସଂଘଟି ଅନ୍ୟତମ । ମାତ୍ର ଏହାର ବିଶେଷତ୍ୱ ଏହି ଯେ ଏଥିରେ ନିଷ୍ଠା ଓ ଆନ୍ତରିକତାର ସୁସ୍ପଷ୍ଟ ନିଦର୍ଶନ ଦେଖାଯାଏ ।"

—କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
୧।୪।୧୯୭୩

★ "ପ୍ରଗତି ଉତ୍କଳ ସଂଘକୁ ଆସି ଅନୁଷ୍ଠାନର ଉନ୍ନତି ସମ୍ପର୍କରେ ସଦସ୍ୟମାନଙ୍କ ସହିତ ଆଲୋଚନା କଲି । ଅଦମ୍ୟ ଉତ୍ସାହ ଓ ଉନ୍ମାଦନା ନେଇ ନାନା ପ୍ରକାର ଅସୁବିଧା ଭିତରେ ଏହି ଅନୁଷ୍ଠାନ ଅଗ୍ରଗତି କରି ଚାଲିଥିବାର ଦେଖି ଆଚମ୍ବିତ ହେଲି । ମୁଁ ସର୍ବାନ୍ତକରଣରେ ଏହାର ଉଜ୍ଜ୍ୱଳ ଭବିଷ୍ୟତ କାମନା କରେ ।"

—ବିନୋଦ ନାୟକ
୨୯।୪।୧୯୭୩

★ "ପ୍ରଗତ ଉତ୍କଳ ସଂଘ ଏକ ସୁପରିଚାଳିତ ଅନୁଷ୍ଠାନ । ଏହାର ଶୃଙ୍ଖଳା ଓ କର୍ମୀମାନଙ୍କ ମଧ୍ୟରେ ଥିବା ଭ୍ରାତୃତ୍ୱ ଦେଖି ମୁଗ୍ଧ ହେଲି । ଉପରିସ୍ଥ କର୍ମଚାରୀଙ୍କ ଦେଶାତ୍ମବୋଧ, ସାଧାରଣଙ୍କ ସହିତ ଏକାଭୂତ ମୈତ୍ରୀ, କର୍ମନିଷ୍ଠା ଦେଖି ଭାବିଲି— ଏମାନେ ଜାତିର ପିତା ମଧୁସୂଦନଙ୍କ ଭାବ ଅକ୍ଷରେ ଅକ୍ଷରେ ପାଳୁଛନ୍ତି । ସଂଘର ଉତ୍କୃଷ୍ଟ ଯାଦୁଘର କଳ୍ପନା ସାର୍ଥକ ହେଉ ।

—କୁଞ୍ଜବିହାରୀ ଦାଶ

୨।୪।୧୯୭୪

★ "ଟିକିଏ ସୁଦ୍ଧା ଅତିରଞ୍ଜନ ନକରି କହିପାରେ ଯେ ରାଉରକେଲାରୁ ମୁଁ ନୂତନ ଉତ୍ସାହ ଓ ପ୍ରେରଣା ନେଇ ଫେରୁଛି । ଏହା ଫଳରେ ମୋ ଆୟୁଷ ବଢ଼ିଯିବ ବୋଧ-ହୁଏ । ପ୍ରଗତ ଉତ୍କଳ ସଂଘର କର୍ମକର୍ତ୍ତାମାନେ ଆନ୍ତରିକତା, ଉତ୍ସାହ, କର୍ମ ପ୍ରବଣତା ଓ ଶ୍ରଦ୍ଧାର ଅପୂର୍ବ ସମ୍ମିଶ୍ରଣ ଦେଖି ଅନୁଭବ କଲି, ଏହି ଅନୁଷ୍ଠାନକୁ କେନ୍ଦ୍ର କରି ଓଡ଼ିଆ ଜାତିର ସଂସ୍କୃତି ନୂତନ ଉନ୍ନତି ପଥରେ ଆଗେଇ ଯିବା ପାଇଁ ସମର୍ଥ ହେଉ, ଏତିକି ଭଗବାନଙ୍କ ନିକଟରେ ପ୍ରାର୍ଥନା ।"

—ବିନୋଦ କାନୁନ୍‌ଗୋ

୨।୪।୧୯୭୪

★ "ପ୍ରଗତ ଉତ୍କଳ ସଂଘ, ମୁଖ୍ୟ ଅନୁଷ୍ଠାନ ଦେଖିବାର ସୁଯୋଗ ଆଜି ମୋତେ ମିଳିଛି । ଏହି ସଂଘର କର୍ମକର୍ତ୍ତାମାନେ ରାଉରକେଲା ସହରରେ ନାନାବିଧ ଜାତୀୟତା ମୂଳକ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠାନ କରିଆସନ୍ତି । ଏହି ସଂଘର ଏଭଳି ଉଦ୍ୟମ ରାଉରକେଲା ଭଳି ଉପାନ୍ତ ଅଞ୍ଚଳରେ ଅତ୍ୟନ୍ତ ପ୍ରଶଂସନୀୟ । ସେମାନଙ୍କର ଜାତୀୟତା-ବୋଧ ସଂକୀର୍ଣ୍ଣ ନୁହେଁ । ଅନ୍ୟ ଭାଷା ତଥା ସଂପ୍ରଦାୟ ପ୍ରତି ସେମାନଙ୍କର ଯଥାବିଧି ଶ୍ରଦ୍ଧା ଓ ସମ୍ମାନ ବାସ୍ତବିକ୍ ପ୍ରଶଂସନୀୟ । ଏହି ସଂଘର ସଭ୍ୟମାନଙ୍କ ମଧ୍ୟରେ ଥିବା ଏକତା ଓ ଭ୍ରାତୃତ୍ୱ ଦେଖି ମୁଁ ଅତ୍ୟନ୍ତ ଖୁସୀ ହେଲି । ଏହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରୁଛି । ଏହାର ଉତ୍ସାହୀ ଉଦ୍ୟୋକ୍ତାମାନଙ୍କୁ ସାଧୁବାଦ ଦେଉଛି ।"

—ଶ୍ରୀନିବାସ ରଥ,

ଜିଲ୍ଲାପାଳ—ସୁନ୍ଦରଗଡ଼

୧।୬।୧୯୭୪

★ "ଏତେ ସ୍ନେହ ଏତେ ଆନ୍ତରିକତା, ସତେ ଭୁଲିହେବ ନାହିଁ । ଆଜି ପ୍ରଗତ ଉତ୍କଳ ସଂଘ ପକ୍ଷରୁ ଆୟୋଜିତ ସଂହତି ଉତ୍ସବ ଆମ ପ୍ରାଣରେ ଅଭିନବ ପ୍ରେରଣା ଓ

ଉତ୍ସାହ ସୃଷ୍ଟି କରିଛି । ଓଡ଼ିଆ ଶିଖୁଥିବା ଆସାମ, ବଙ୍ଗଳା, ଆନ୍ଧ୍ର, ମେଘାଳୟ ପ୍ରଭୃତିର ପ୍ରଶିକ୍ଷଣାର୍ଥୀମାନେ ଏଠାରେ ଓଡ଼ିଆ ପ୍ରାଣର ପରିଚୟ ପାଇଗଲେ । ଓଡ଼ିଆ ଭାଷା ଶିଖିବା ପରେ ଏପରି ଏକ ଅନୁଷ୍ଠାନରେ ଅଂଶ ଗ୍ରହଣ କରିବା ଦ୍ୱାରା ଏମାନେ ଓଡ଼ିଆର ଚିନ୍ତା, ଚେତନା ଓ ଉଦାରତା ସହିତ ପରିଚିତ ହୋଇଗଲେ । ଆଜିର ସନ୍ଧ୍ୟାଟି ପ୍ରକୃତିରେ ମଧୁମୟ । ଅନୁଷ୍ଠାନର ପନ୍ଥା ସୁଗମ ଓ ଦୀର୍ଘାୟିତ ହେଉ ।”

—ଅରବିନ୍ଦ ପଟ୍ଟନାୟକ

(ଅଧ୍ୟାପକ, ପୂର୍ବାଞ୍ଚଳ ଭାଷାକେନ୍ଦ୍ର—ଭୁବନେଶ୍ୱର)

୩୧।୧।୧୯୭୫

★ “ଜାତୀୟ ଜୀବନର ପ୍ରାଣ ପ୍ରତିଷ୍ଠା ଓ ଆତ୍ମ ବିଶ୍ୱାସ ଫେରାଇ ଆଣିବା ପାଇଁ ଅନୁଷ୍ଠାନର କର୍ମୀମାନେ ବଦ୍ଧ ପରିକର ହେଲେ ଏ ସମାଜର ଅନ୍ଧକାର ଅପସରି ଯିବ । ଜାତିକୁ ହୀନ ମନ୍ୟତାର ଗ୍ଲାନିରୁ ଉଦ୍ଧାର କରିବା ପାଇଁ ତରୁଣ ବନ୍ଧୁମାନେ ନିଜେ ପ୍ରସ୍ତୁତ ହେଉଥିବା ମନେହୁଏ । ଏହି ଅବସରରେ ଅନୁଷ୍ଠାନର ଶୁଭ କାମନା କରି ସୁଖୀ ହେଉଛି ।”

—ପଠାଣି ପଟ୍ଟନାୟକ

୧।୪।୧୯୭୫

★ “ମୋର ଗଭୀର ବିଶ୍ୱାସ ପ୍ରଗତି ଉତ୍କଳ ସଂଘ ଯେଉଁ ଆଦର୍ଶ ଓ ଲକ୍ଷ୍ୟ ନେଇ କାମ କରୁଛି ଦିନେ ନା ଦିନେ ସେମାନେ ଲକ୍ଷ୍ୟରେ ପହଞ୍ଚିବେ । ଓଡ଼ିଆ ଜାତିର ହୃତ ଗୌରବ ଓ ମହାନ ପରଂପରାକୁ ସେମାନେ ଏକ ନୂତନ ରୂପରେଖ ଦେଇ ଫେରାଇ ଆଣି ପାରିବେ । ସେମାନଙ୍କର ଏ ପ୍ରଚେଷ୍ଟାରେ ସାଫଲ୍ୟ ହାସଲ ପାଇଁ ମୋର ଆନ୍ତରିକ ଶୁଭେଚ୍ଛା ରହିଲା ।”

—ପ୍ରାଣବନ୍ଧୁ କର

୧।୪।୧୯୭୫

★ “ପ୍ରଗତି ଉତ୍କଳ ସଂଘର ସଭ୍ୟମାନେ ଯେଉଁ ଆଦର୍ଶ ଓ ଲକ୍ଷ୍ୟ ନେଇ ଆଗେଇ ଚାଲିଛନ୍ତି, ଭଗବାନ କରନ୍ତୁ—ସେମାନେ ଯେମିତି ଲକ୍ଷ୍ୟରେ ପହଞ୍ଚି ପାରିବେ ।”

—ସାମୁଏଲ ସାହୁ (ବାବି)

୧।୪।୧୯୭୫

★ "Pragati Stands for progress, May God help this institution to sustain the progress of Oriya Culture. I wish them God head."

—A. N. TIWARI
(Cultural Affairs, Orissa)
14-4-1975

★ "It is a matter of great credit to the founders, office bearers and organisers of the Sangha that they have been able to make the Sangha a noble and respectable institution rendering yeomen service not only to the people of Rourkela but to the whole of Orissa and all the Oriya-speaking people. In due time, I am sure, Orissa will be proud of such an institution which will be an ideal to the other institutions of this type in Orissa which are bound to come up."

—S. N. BHANJA DEO,
(Ex-Minister)
8-4-1974

(ଏହା ବ୍ୟତୀତ ଭାରତର ରାଷ୍ଟ୍ରପତି ଶ୍ରୀଯୁକ୍ତ ଅହମଦ, ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ରାଧାକୃଷ୍ଣନ୍, ଓ ଶ୍ରୀଯୁକ୍ତ ଗିରି, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ, ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ଯଣ୍ଠି, ପୂର୍ବତନ ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ପାଠକ, ପୂର୍ବତନ ବାଚସ୍ପତି ଶ୍ରୀଯୁକ୍ତ ଧୀଲନ, ପୂର୍ବତନ ବିରୋଧୀ ଦଳ ନେତା ଡ଼: ରାମସୁଭଗ ସିଂ, ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ, ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡ଼: ଆନ୍‌ସାରି, ଡ଼: ଖୋସଲା, ଶ୍ରୀଯୁକ୍ତ ଆକବର ଅଲ୍ଲୀ ଖାଁ, କେନ୍ଦ୍ର ଉପମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରଭୃତି 'ଉତ୍କଳ ଦିବସ'ରେ ଅନୁଷ୍ଠାନ ତଥା ଉତ୍ସବର ମଙ୍ଗଳ କାମନା କରି ଶୁଭେଚ୍ଛା ବାର୍ତ୍ତାମାନ ଦେଇଛନ୍ତି)।



# ପ୍ରଗତି ଉତ୍କଳ ସଂଘର କର୍ମକର୍ତ୍ତାବୃନ୍ଦ
## ( ୧୯୭୭ ମସିହା )

| | |
|---|---|
| ସଭାପତି | ଶ୍ରୀ ନରେଶ ଚନ୍ଦ୍ର ନାୟକ |
| ଉପ-ସଭାପତି | ଶ୍ରୀ ନାରାୟଣ ଆଗ୍ରୱାଲ |
| | କୁମାରୀ ନିରୂପମା ପଟ୍ଟନାୟକ |
| ସାଧାରଣ ସମ୍ପାଦକ | ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି |
| ସହ ସମ୍ପାଦକ | ଶ୍ରୀ ବି. ବି. ରାୟ |
| କୋଷାଧ୍ୟକ୍ଷ | ଶ୍ରୀ ଗଜେନ୍ଦ୍ର ପ୍ରସାଦ ତ୍ରିପାଠୀ |
| ସାଂସ୍କୃତିକ ସମ୍ପାଦକ : | ଶ୍ରୀ ବୃନ୍ଦାବନ ନାୟକ |
| କ୍ରୀଡ଼ା ସମ୍ପାଦକ : | ଶ୍ରୀ ସତ୍ୟନାରାୟଣ ମହାନ୍ତି |
| କାର୍ଯ୍ୟକାରୀ କମିଟି ସଭ୍ୟ :— | |
| | ଶ୍ରୀ ରାଧାନାଥ ରାଉତ |
| | ଶ୍ରୀ ଦିବାକର ମହାନ୍ତି |
| | ଶ୍ରୀ ଏ. ପଟ୍ଟନାୟକ |
| | ଶ୍ରୀ ଏସ୍. ଏନ୍. ପାଣିଗ୍ରାହୀ |
| ଲାଇବ୍ରେରିଆନ୍ | ଶ୍ରୀ ବିଦ୍ୟାଧର ଜେନା |
| ସହ ଲାଇବ୍ରେରିଆନ୍ : | ଶ୍ରୀ ଆର. କେ. ମିଶ୍ର |
| | ଶ୍ରୀ ପି. ସି. ମହାନ୍ତି |
| | ଶ୍ରୀ ଏସ୍. ଏମ୍. ରାଉତରାୟ |
| | ଶ୍ରୀ କେ. ଏମ୍. କର |
| ପ୍ରକାଶନ ଦାୟିତ୍ୱ | ଶ୍ରୀ ରାଧାନାଥ ରାଉତ |
| | ଶ୍ରୀ କେ. କେ. ରାୟ |

ଆସବାବପତ୍ର ଓ ପଠନାଗାର ଦାୟିତ୍ୱ : ଶ୍ରୀ ନାରାୟଣ ପ୍ରସାଦ ମହାନ୍ତି

ଅବୈତନିକ ହିସାବ ସମୀକ୍ଷକ : ଶ୍ରୀ ଜଗନ୍ନାଥ ମହାପାତ୍ର

'ସ୍ମାରକୀ' ସମ୍ପାଦକ : ଡଃ ନବୀନ କୁମାର ସାହୁ

ନାଟକ ନିର୍ଦ୍ଦେଶକ ଶ୍ରୀ ବିମଳ ଚୌଧୁରୀ ।

# Rourkela Produces Variety of Sophisticated Steels

Core industries would be left flat-footed without their basic feed-flat steel products from Rourkela. For these core industries - shipbuilding, automobile, Locomotive, fabrication, wagon building, dynamos, transformers, tubes and pipes, domestic appliances, agricultural implements, defence equipment etc. Rourkela produces a diversity of flat products like wide and heavy plates, medium and light hot-rolled sheets and strips, cold-rolled sheets and strips, hot dipped and electrolytic tin plates, galvanised sheets and strips, high silicon steel sheets for electrical equipment and large diameter pipes. Some of these products are also exported. Rourkela thus is both a conserver and earner of foreign exchange.

Besides, Rourkela also produces two types of chemical Fertilizers - Calcium Ammonium Nitrate (SONA) and Ammonium Sulphate (RAJA) - and a host of coal chemicals to make an all round and substantial contribution to India's economy.

Thus Rourkela serves the country's industrial system in a big way.




— ROURKELA STEEL PLANT

# ଆଉ ଏକ
# ସାଧୁ ଉଦ୍ୟମ

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସୁମଧୁର ସଙ୍ଗୀତର ରେକର୍ଡ଼ ଓଡ଼ିଶାରେ ପ୍ରଥମଥର ପାଇଁ ପରିବେଷଣ କରିଛନ୍ତି 'ରାଉରକେଲା କଳା ପରିଷଦ'। ମୁଖ୍ୟମନ୍ତ୍ରୀ **ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ** ଦ୍ୱାରା ଉଦ୍‌ଘାଟିତ ହୋଇ ସବୁ ରେକର୍ଡ଼ର ରେକର୍ଡ଼ ଭଙ୍ଗକରି ଅତ୍ୟନ୍ତ ଲୋକପ୍ରିୟ ହୋଇଛି ଏହି ପ୍ରଥମ ସାଧୁ ଉଦ୍ୟମ ।

ସ୍ୱର ଦେଇଛନ୍ତି : ଶ୍ରୀମତୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ
କୁମାରୀ ନିର୍ମଳା ମିଶ୍ର
ଶ୍ରୀ ଭିକାରି ଚରଣ ବଳ

ସୂଚନା ଓ ସମୀକ୍ଷା : ଡକ୍ଟର କବିପ୍ରସାଦ ମିଶ୍ର
ସଙ୍ଗୀତ ନିର୍ଦ୍ଦେଶନା : ଡକ୍ଟର ସୁଶୀଲ ଶତପଥୀ
ସଂଳାପ ଓ ପ୍ରଯୋଜନା : ଗୁରୁ ବଂଶୀଧର ଦ୍ୱିବେଦୀ
ପ୍ରସ୍ତୁତ କରିଛନ୍ତି : ଗ୍ରାମଫୋନ କମ୍ପାନୀ ଅଫ୍ ଇଣ୍ଡିଆ, କଲିକତା ।

ଓଡ଼ିଶା ଓ ଓଡ଼ିଶା ବାହାରର ସବୁ ପ୍ରସିଦ୍ଧ ରେକର୍ଡ଼ ଦୋକାନରେ କିମ୍ବା ରାଉରକେଲା କଳା ପରିଷଦ, ବି/୬୭, ସେକ୍ଟର-୧୮, ରାଉରକେଲା-୩ ରେ ଅନୁସନ୍ଧାନ କରନ୍ତୁ ।

ଦି କୋଣାର୍କ ପ୍ରିଣ୍ଟିଂ ୱାର୍କସ୍, ଉଦିତନଗର, ରାଉରକେଲା-୧୨ରେ ମୁଦ୍ରିତ